ଓଁ ନମଃ ବିରଜାୟୈଃ ।

12 APR 1921
BUILDING

# ଧ୍ରୁବଚରିତ

ଗୀତାବଳୀ ।

ଶ୍ରୀ ଶ୍ରୀ ବିରଜା ସଙ୍ଗୀତ ସମାଜର ଶିକ୍ଷକ
ଶ୍ରୀ କୃଷ୍ଣ ପ୍ରସାଦ ବସୁଙ୍କ ଦ୍ୱାରା
ରଚିତ ଓ ପ୍ରଥମବାର ପ୍ରକାଶିତ ।
ଯାଜପୁର, କଟକ ।

---

PRINTED BY M. L. MAHARANA.
UTKAL PRESS. 8. ST. JAMES SQR. CALCUTTA.
1921.

---

ମୂଲ୍ୟ ୫ ୦ ✓ ମାତ୍ର ।

---

ଶେଷ ପୃଷ୍ଠାରେ ଆମ୍ଭର ସ୍ୱାକ୍ଷର ଦେଖି କ୍ରୟ କରିବେ ।



# ବନ୍ଦାପନା ।

## ସ୍ତବ ।

ଜନନି ବିହଙ୍ଗେ ତୋରାଜ ହୃଦ ସରୋଜେ
ସ୍ରଜକଞ୍ଜ କୁସୁମ କୋକନଦ ଚଦାରଜେ
ତୋଛି ଅନ୍ତର ମଳି ଦଳି ଦିଅ କର ଚିତ୍ତେ
ଛୁହିଁ ମୋ ଗରବ ମାନ
ଛୋ ବଳେ ବଳୀୟାନ
ବାମନ ଅକିଞ୍ଚନ ଲୋଡ଼େ ଧରି ଦ୍ଵିଜରାଜେ
ମା ଠାଇଁ ସିନା ମନ କଥା ଜଣା,
ପୁଅ ମନ ବୁଝେ ମା
ମା ଯାର ନାହିଁ ଦୁନିଆରେ ତା ପାଇଁ
କେହି ନ ବୋଲିବେ ଆହା !
କାନ୍ଦି୨କା ପାଇବ ଦଗା ଯାଗା୨ କେହି ନ
ହୋଇବେ ସା ।
ସା ରି ଗ ମ ପ ଧ ନି ସା ରେ ସା ନି ଧ ପ ମ ଗ ରେ ସା ।

# Programme.



## ପୁରୁଷ ।

ଉତ୍ତାନପାଦ, ଅଗ୍ନି, ଇନ୍ଦ୍ର, ଉତ୍ତମ, ଧ୍ରୁବ, ନାରଦ,
ନାରାୟଣ ମହାଦେବ, ସପ୍ତର୍ଷି ।
ଗୋବର୍ଦ୍ଧନ—ଜନୈକ ପାର୍ଷଦ ଓ ବୃନ୍ଦର ପିତା ।
ଲକ୍ଷ୍ମଣ—ଜନୈକ ନାଗରୀକ ।

## ସ୍ତ୍ରୀ ।

ମାଧ୍ୱା, ସୁନୀତି, ସୁରୁଚି ,
ବୃନ୍ଦ—ଗୋବର୍ଦ୍ଧନର କନ୍ୟା, ପରେ ଉତ୍ତମଙ୍କର ସ୍ତ୍ରୀ ।
ପଚ—ସୁରୁଚିଙ୍କର ଦାସୀ ଓ ଗୋବର୍ଦ୍ଧନର ଶାଶୁ ।
ବସନ୍ତ ସେନା—ଇନ୍ଦ୍ରଙ୍କର କନ୍ୟା ।



ଓଁ ନମଃ ବିରଜାୟୈ ।



# ପ୍ରଭାତ ଗୀତ

( ଦେଶ କାଳ ପାତ୍ର ଭେଦରେ ଯଦ୍ୟପି ଗୀତମାନଙ୍କର ପରିବର୍ତ୍ତନ କରା ହୋଇ ଥାଏ—ତ୍ରୁଟି ମାର୍ଜ୍ଜନା କରିବା ହେବେ । )

( ୧ )

ଜାଗ ଜାଗ ନର ନାରୀ
ନିର୍ମ୍ମଳ ପ୍ରେମସାଗର ସୁରସୁନ୍ଦର ବର ନାଗର
ଝଲକେ ଝଲକେ ପଲକେ ପଲକେ ଢାଳଇ ପ୍ରେମବାରି ।
ମାନସ ମୋହନ ଭକତଜୀବନ ନବଘନଶ୍ୟାମ ବରଣ
ପତିତପାବନ ନିଖିଳ ଭୁବନ ଦୀନଜନ ଦୁଃଖ ଭଞ୍ଜନ
ଭଜରେ ରଟରେ ଗାଅରେ ଅବିରାମ
ତାପିତ ପ୍ରାଣା ରାମ
ଭଜିଲେ ଯିବ ଶୋକ ସନ୍ତାପ ପାଇବ ଦୁଃଖହାରୀ ।

---

( ୨ )

ନାରଦ ଓ ମୁନି ପୁତ୍ରଗଣ ।

ସନ୍ତ ସାଧୁଜନ ପାଳନ କାରଣ ଦୀନରୂପେ ଦଇତାରି
ନିତ୍ୟ ନିରଞ୍ଜନ ବ୍ରହ୍ମସନାତନ ଖେଳିବେ କାଳ ବିସ୍ମରି ।
ଭେଦ ଜ୍ଞାନ ବୁଦ୍ଧି ବାଦ ବିବାଦ ଭେଦି ନପାରେ ଶ୍ରୁତିରି
ସର୍ବଶକ୍ତିଧର ବିଶ୍ୱମୂଳାଧାର ବହୁରୂପି ଖେଳ ତାହାରି ।
ଶି —ସତେ ଆସିବେ ଦେହଧରିବେ ଭାରା ହରିବେ—
ନରରୂପେ ବିହରିବେ ହରି ?
ବାରିବିନ୍ଦୁ ଯଥା ହୁତାଶନ ସଙ୍ଗେ ଶୂନ୍ୟେ ଯାଏ ଉଡ଼ି
ଜ୍ଞାନ ଦୀପ୍ତି ଶିଖା ତାପିତ ଅନ୍ତରେ ନିରାକାର ରୂପ ଧରି—
( ବିହରଇ ହରି ବିହରଇ ହରି ନିରାକାର ରୂପ ଧରି )
ଶୀତଳ ହୋଇଲେ ପୁଣି ପଥର ହୁଅଇ ପାଣି
ତରଳ ସୁନୀଳ ଦେହଧାରୀ ।
ପାପ ତାପ ମାୟା ବିଜଡ଼ିତ ଲାଗି ବିକଶିବେ ନର ରୂପଧରି ।

( ୩ )

ଜୟ୍ ଜୟ୍ ଜୟ୍ କ୍ଷିତିପତିତୟ୍ ମାନ କେତନ ହେ—
ଶାପ ଶାସ ଭାରତ ଈଶ ଶାପ ଭୂବନ ହେ ।
ପୁଣ୍ୟ କୀରତି ଗମ୍ଭୀର ସ୍ୱରେ
ହସି ହସି ଆସେ ଭାସି ମନ୍ଦ ସମୀରରେ
ଯାମିନୀ ମଧୁର ଗୃଦ୍ଧିନୀ ଗାଉଛି ଧରଣୀ ଶିୟରରେ—
ନନ୍ଦନଦୀଗିରି ଗାଏ ଲହରୀ ଶ୍ୟାମ ବିପିନ ହେ ।

(୪)

ପଡ଼ିଗଲ ମୋର ପିଛା ପିତା ଡାକ ଡାକିତ ପାରିଲି ନାହିଁ
ଫୁଟି ଉଠୁଥିଲା ଆନନ୍ଦ କଳିକା ଫୁଟିତ ଫୁଟିଲା ନାହିଁ ।
ଉଇଁ ଆସୁଥିଲା ଉଜ୍ଜ୍ୱଳ ତାରକା ରହିତ ପାରିଲା ନାହିଁ
ବିଜୁଳି ପରାୟେ ଚମକ ଉଠିଲା
ଚହଟେ ମନ ମୋହିଲା—
ଅଭାଗିନୀ ପ୍ରାଣେ ଅନ୍ଧାର ବଢ଼ିଲା ସରଗ ହରିବା ପାଇଁ ।

---

(୫)

ଏ ମଲ୍ଲି ମାଳତି ହେବ ତାହାରି ଗୋ
ମୋର ଅନ୍ତରେ ଥାନ ଯାହାରି
ବେଶ ସୁବାସେ ଉଗ୍ର ତାହାରି ଗୋ
ଯେଉଁ ରସିକ ଶଉ ଶଢାରି
ମଣି ମାଣିକ୍ୟ ମରମ ଧରି ଗୋ
ଯାରେ ଏକା ସେହୁ ସେ ଜହୁରି ।
ସିନା ମାଳତି ଦେଖୁଛ ସାନ
ଗୁଚ୍ଛା ଅଛି ତାସଙ୍ଗେ ମୋ ମନ
ମୋର ମନଚୋରା ବିନୁଁ ତାର ଗୋ
ଅଧିକାର ହୋଇବ କାହାରି ।

---

(୬)

ଯେ ଯାହାକୁ ଖୋଜେ ସେ ପାଏ ନାହିଁ ।
ଯୁଗେ ଯୁଗେ ଏ ରୀତି ଖିଚିଛନ୍ତି ଜଣା ଅଛଇ ।
କେହି ଧନ ଖୋଜେ ମାନ କେହି ଉଚ୍ଚ ଆସନ
କେହି ବାମନ ଶଶାଙ୍କ ଆଶେ ବଳାଏ ମନ
ଧନ ନିର୍ଦ୍ଧନ ଗୁଣୀ ନିର୍ଗୁଣ ସବୁ ସମାନ
ଯାହା ମିଳଇ ନାହିଁ ତହିଁକି ହୁଏ ଉଛନ
ପଛେମିଳୁ-ନ ମିଳୁ-ଦିବାନିଶି ଭାଳୁଥାଏ ବସି ସ୍ୱପନ ।
ବାସନା ବିନାଶେ ଶୋଚନା ନାହିଁ ।

---

(୭)

ନୀଳନଳିନ ଆଖି ତୋଲାଗି ପଙ୍କଜମୁଖି
ହାସ ବାସ ବେଶ ବରଜି ରହିଛ ହୋଇଛ ଦୁଃଖୀ ।
ପ୍ରାଣ ତୁ ଧନ ମାନରୁ ତୁ ମୁକୁତାମାଳି
ତୋଲାଗି ରାଜ କୁମାରୀ ହେଲା ଭିକାରି
ତୋ ଲାଗି ବନେ ବନେ—
ବୁଲୁଥାଏ ନିଶି ଦିନେ
ଆନମନେ ଅନୁକ୍ଷଣେ,
ତୁ ଏଡ଼େ ଦଗାଦାର—କରିଲୁ ତାକୁ ପର
ସେ ହେଲା ବୈରାଗୀ ।

---

(୮)

ଯହିଁ ଗଣ୍ଡି ତହିଁ ରସ ଥାଏ ନାହିଁ
ତହିଁ ବାଲି ଯହିଁ ବିଧାର ନଈ ।
ଏକା ଡେମ୍ଫ ଉପରେ ଜାଉଁଲି କୁସୁମ ଯହିଁ
କେହି ନୁହଇ ତୁଲ ଧାରଇ ନାହିଁ ମନ ଉଷାଇ ।
ଗୋଟି ଗୋଟି ବାରିଦ କ୍ଷୀର ଢାଳଇ
ଯୋଡ ହୋଇଲେ ଜଗତ ଜାଳଇ, ବଜ୍ରମାରଇ ।

(୯)

ଯାହାର ଯହିଁ ଭ ମନଖୁସି, ଯାଉ ଭାସି
ଶେଷେ ଆସି ବ୍ରହ୍ମପଦେ ଯିବ ମିଶି ।
ଦୁନିଆରେ ଏ ଖେଳ ଦିବାନିଶି
ଗ୍ରୀଷମ ବରଷା ବାରମାସି
କେହି ସଲଖ ଖୋଜେ, କେହି ଅଲମେ ମଜେ
କେହି କଲପେ ବସେ କେହି ପରକୁ ହସେ
କେହି ଆଲୁଅ ଛାଡ଼ି ଅନ୍ଧାରରେ ଯାଉଅଛି ଭାସି
କେହି ଅନ୍ଧାର ଛାଡ ଆଲୁଅରେ ଯାଉଅଛି ଭାସି
କେହି ସ୍ୱୈର ଦଗାଦାର
କେହି ସାଧୁ ସଦାଚାର
ଆସିବ ଜୀବନେ ଦିନେ ହେବ ଏକାକାର
ଆପଣାପର, ଭେଦ ବିଚାର, ହୋଇବ ଦୂର
ଭାଇ ଭାଇ ଯିବେ ମିଶି ।

(୧୦)

ଜଗତରେ ଯେତେ ଖେଳ ଚାତୁରୀ
ଭଲ ମନ୍ଦ ଛନ୍ଦ କୂଟକପଟ ନଟ ନଟନୀୟା—
ସବୁନାଟ ତୋହରି ।
ସୁଖ ଦୁଃଖ ଶୋକ ପୀରତି ବୈଭବ
ତୋର ଗୁଣେ ନର କରେ ଅନୁଭବ
ତୋର ଯୋଗୁଁ ଜଣେ ଲୋଡ଼ଇ ପିୟୂଷ
ଜାଲ କୂଟ ପିଇ ଆନ ଯାଏ ମରି ।
ଗୋପଲୀଳାଟେକଲା ପରି ଗୋପନରେ
ରହି ଚଳାଉଛୁ ବାଲ ବୃଦ୍ଧ ନରେ
ପିତୁଳା ପରାୟେ ଖେଳାଉ ସଂସାରେ
ସେହୁ ଜାଣେ ତୋଠାଇଁ ମନ ଯାହାରି ।

(୧୧)

ମୋର ଜାଲରେ ଜଗତ ।
ଜ ଧନୀ ନିର୍ଦ୍ଧନୀ ଜ୍ଞାନି ସକଳେ ମୋହିତ ।
ଜନକ ଜନନୀ ଦାରା ସୁତ ମିତ
ପୀରତି ମମତା କରାଏ ମୋ ଗୀତ
ମୋର ବଂଶୀଧ୍ୱନି ଶୁଣି—ଅଛି କେ ପରାଣୀ
ନ ହୋଇବ ବିଚଳିତ ।
ଗ୍ରୀଷମ ବରଷା ଆଲୋକ ଅନ୍ଧାର
ମୋର ଯୋଗୁଁ ଯେତେ ଅନ୍ତର ବିକାର
ମୋର ବଳେ କାଚ ଦିଶଇ ମୁକୁତା
ମୁକୁତା ଦିଶେ କୁତ୍ସିତ ।

( ୧୨ ) ( ୧୨ )

ସତେ କ ଗୁଡ଼ିଯିବ ରାଣୀ
କେ ଆଉ ତୋଷିବ ମନ ଜାଣି ।
କରମ ବିପାକରେ କେ ଆଉ ରଖିବ
ତାଳବ ପିୟୁଷ ପୁଅ ମଣି ।
କେଉଁ ଅପରାଧେ ହୋଇଲ ବଇରୀ
ସ୍ନେହ ମମତା ପ୍ରୀତି ବନ୍ଧନ ଲଘିଲ
ଶୁଣିଲ ନାହିଁ ଆମ୍ଭ ଶୋକ, ବାଣୀ ।

---

( ୧୩ )

ମାତା ସତେକି ଏକଥା ଗୋ ତୁମ୍ଭେ ବରଜି ଯିବ ।
ତୁମ୍ଭ ଆଦର ସରାଗ ପୀରତି ମମତା ସବୁ ଏକାକାଳେ
ପାଶୋରି ଦେବ ।
ଆଉ କେ ଅଛି ମା କେ ବୁଝିବ ମନ
କେ ଆଉ କରିବ ଏତେ ସୁଯତନ
କାର ଆଉ ଦୁଃଖେ କାନ୍ଦିବ ପରାଣ ଆହା ବୋଲି କିଏ
ଉଠାଇ ନେବ ।
ହସି ହସି କିଏ ପାଶେ ଆସି ବସି
ଅନ୍ତରର ଖେଦ ଦେବ ମା ବିନାଶି
କେବା ବିଗୁଡ଼ିବ ପ୍ରୀତି ସୁଧାରାଶି
ମଲା ଦେହ କିଏ ଉଲ୍ଲାସି ଦେବ ।

(୧୪)

ମିଛ ଭାବିଲେ କି ହେବ ।
ମନକୁ ବୋଧ ଦେଲେ କି ଧଳା କଳା ହେବ ।
ତୁହି ଯାର ହୋଇଛୁ ବଇରୀ
ସେତ ମୋର ଜୀବନ ସଙ୍ଗାଳି
ବ୍ରହ୍ମାଣ୍ଡ ଠାକୁର ଯା' ଗଳାର ମାଳି ତାକୁ ରଖିବ ଦଇବ ।
ଧନମାନ ଜ୍ଞାନ ମୋର ଜୀବଜୀବନ
ଯେହୁ ଏକା ହୁଏ ଯେହୁ ବୁଝେ ମରମ
ମୋ ମନ ଜାଣେ ଯେ-ମୁଁ ତାହାକୁ ରଖେ
ତାଲାଗି ଗହନବନେ, ବୁଲୁଥାଏ ନିଶି ଦିନେ ।
ଛାଇଆପରି ଅନୁକ୍ଷଣେ ( ତାକୁ ) କେ ମାରି ପାରିବ ।

(୧୫)

ତୁ ଧନ୍ୟ ! ତୁ ଧନ୍ୟ !
କରୁଣାନିଦାନ ଧ୍ୟାନଜ୍ଞାନାତୀତ ମାୟାତୀତ ବିଶ୍ୱମୋହନ ।
ସାଗର, ସମୀର, ଭୂଧର ଶିଖର ଗୁରୁ ତରୁର ବରଣ
ସବୁ ତୁହି ସବୁ ଗୁଣ ତୋହର ସବୁଠାଇଁ ତୋର ଆସନ ।
ସବୁର ତୁହି କାରଣ, ସବୁର ତୁହି କାରଣ, ସବୁର ତୁହି କାରଣ ।

(୧୬)

କର କାମନା ହରି ପଦେ ଆରାଧନା
ରସେ ରଟୁନା ହରିନାମ ରସନା !
କେହି ରହିନାହିଁ ରହିବ ନାହିଁରେ କେହି ଯିବ ନାହିଁ ଜାଣନା
ମିଛ ସଂସାରେ, ଭୁଲମାୟାରେ, ହେଉଛୁ ଦିବା ନିଶି ବଣା ।
ଧନ ରତନ କାୟା କାଞ୍ଚନ କଡ଼ାକେ ନ ହୋଇବ ଗଣା ।

(୭)

ଭ୍ରମରାରେ କର୍ମା ମରୁ ଝୁରି
ତୋର ପ୍ରଣୟିନୀ ରାଣୀ କୁମୁଦିନୀ ଗୁଣ ଗୁଣି ଗୁଣି
ଶେଷେ ଗଲା ଝରି
ହସ ଖେଳ ବେଳ ଗଲା ସରି ।
ପ୍ରେମ ପିପାସିନୀ ଗୁଣମଣି
ପ୍ରେମଲାଗି ହେଲି ଭିକାରୁଣୀ
ଆଦର ସରାଗ ମମତା ଅଭାବେ ହେଲା ଯେହ୍ନେ
ମଣିହରା ଫଣି
ଝୁରି ଝୁରି ଶେଷେ ଗଲାଝରି ।
ଭାବିଲେ କି ହେବ ଗଲାକଥା
ନିଜ କର୍ମଦୋଷେ ଭୁଞ୍ଜୁ ବ୍ୟଥା
ନିୟତିର ଗତି, କାର ବା ଶକତି ପାରିବ ବରତି ଦେବ ମଥା ।
ପୀରତିର ରୀତି ଏହିପରି ।

---

(୮)

ଆସ ଆସ ଆସ ପଦେ ଅଧେ ଭାଷ
ଘେନ ବଦାନ୍ୟା ଗନ୍ଧବାସ
ଘରବିରହିଣୀ, ରହିଛୁ ସଙ୍ଗିନୀ, କିଞ୍ଚିତରେ ତାର ମନତୋଷ ।
ବହୁଦିନୁଁ ସହି, ଆଶାପଥ ଚାହିଁ
ରହିଥିଲା ମଣିହରା ଫଣି ହୋଇ
ଆସ ଗୁଣମଣି-ଗୃହୁ ସୁବଦନୀ ଏଣିନୟନାର
ଖେଦ ନାଶ ।
ଦିନୁଁ ଦିନୁଁ ତନୁ ହୋଇଲାଣି କ୍ଷୀଣ
ତବ ଭାବନାରେ ଅଧୀର ପରାଣ
ସୁଜନ ରସିକ ଅଜାଣ ହୋଇଲେ
କେଅବା ରଖିବ କଲେ ରୋଷ ।

( ୧୯ )

ଯହିଁ ଯାହା ସୁନ୍ଦର ତାର ନୁହେ ଆଦର
　　ଏହି ନୂଆ ବେଭାର ଦିବାନିଶି ସଂସାର
ଚନ୍ଦ୍ରମା ପରା ମଧୁର ରାହୁ ଗରାସେ
ପଙ୍କଜିନୀ ମରଇ ଶିଶିର ବିକାଶେ
କୁସୁମ କଢ଼ ରସିକ ସୁଙ୍ଘେ ହରଷେ
ଦଣ୍ଡେ ଘଡ଼ିଏ ନ ଯାଉଁ ଧୂଳିରେ ମିଶେ
ସୁନ୍ଦରେ କି ଲାଭ ଯେବେ ନାହିଁ ସରାଗ
ଯେବେ ଦୁଇ ସମାନ କ୍ଷୀର ଆବର କ୍ଷାର ।

---

( ୨୦ )

ଏକା ଚନ୍ଦ୍ରବିନୁ ଜଗତ ଅନ୍ଧାର ଉଆଁସ ରାତିର
ଏକା ସୁବାସବିନୁଁ ପଳାଶ ନୁହେଁ ସୁଷମ ମିଶେ ମାଟିର ।
ଏକା ମଣି ଲାଗି ଫଣିର ଆଦର ଗରଳ ଆଧାର
ଏକା ମୁକୁତା ଲାଗି ସାମୁକାସିନା ଦାମିକା ହୁଏ ବଜାର
କ୍ଷାର ହୋଇପାଏ ସାଗରର ନୀର କୋଟି ଉପଗ୍ରୁର
ସିନା ରତନମଣି ହୋଇଛୁ ବୁଝି ଅନ୍ତରରେ ଖଣିତାହାର ।

---

( ୨୧ )

ବୀଣା ଆଜ ପ୍ରାଣ ଭରି ହରିନାମ କରରେ
ଆଜ ନରଦେହେ ବିରାଜେ ଗୋଲକ ନାଗର ରେ ।
ଆକାଶରେ ଉଜ୍ଜ୍ୱଳ ବିକାଶେ ତାରକା
ଧ୍ରୁବ ଜ୍ୟୋତି ଧ୍ରୁବଦେହେ ଦେଲେଣି ଦେଖା
ତାର କିରଣରେଖା ପ୍ରେମ ପିୟୂଷ ମଖା
ଅଛି ମୁନି ତପୋବନେ ହୋଇଛୁ ଲେଖା
ଆସ ପାପି ତାପି ପ୍ରାଣ ମନ କରାଅ ସଫଳରେ ।

( ୨୨ )

ଦେଖ ଶ୍ୟାମଳ ହରିତ କ୍ଷେତ ଉପରେ

ବାୟୁ ବହୁଛି ଧୀରେ—

ତାଳେ ତାଳେ ଖେଳାଇ ଲହରିରେ କାଉଁଳିଆ ପାଗ

ମେଘ ଢାଙ୍କିଛି ଶିରେ ।

ଝୁମୁ ଝୁମୁ ଝୁପୁ ଝୁପୁ ବରଷା

ଦେଖି କୃଷକ ଅନ୍ତରେ ଭରସା

ହଆରିରେ ଶିଆରି ଶିଆରିରେ

ଝରଝର ବାହିଝରେ ଶୃରୁ ଧାରାରେ—

ବାୟୁ ବହୁଛି ଧୀରେ ।

ଘାପ ଟାକିଛି ବଉଙ୍ଗେ ମାଛ ଆଶାରେ

ଲାଞ୍ଜ ରଖି ଭିତରେ

କଙ୍କିହିଏ ବସି ଧାନ ମୂଳରେ

ଦୋଳି ଖେଳୁଛ ହରଷ ମନରେ

ସଙ୍ଗେ କେଡ଼ି ଡାଡ଼ି ପିଙ୍ଗା ପାଞ୍ଚଣ

ପିଠେ ପକ୍ଷିଆ ପଧାନ ସନ୍ତାନ ଗୁଳେ—

ବାୟୁ ବହୁଛି ଧୀରେ ।

ନିଅଁ। ଧୂଳାଧରି, ବିଭୁଗୁଣ ସୁମରି

ପ୍ରେମେ ନମେ ପଦ୍ୟରେ ।



( ୨୩ )

ଆଜଲୋ ମୋରି ଦିଲ ବଡ଼ା ଖୁସ୍
କାହେ ନ ଜାଣେ ଏତ୍ନା ସନ୍ତୁଷ୍
ମୁନିଆଣୀ କହିଥିଲାତ ସୁନୀଚି କଥା
ମୋର କେମତେ ? ହେଉଛୁ ଧୋକା ବୁଲୁଛୁ ମଥା
ଜେଷ୍ଟାଙ୍କ କେହି ଖବର ନାହିଁ କୁଛ୍ ।
ଜଙ୍ଗଲର ଢିଅ ସୁନୀଚି ଜଙ୍ଗଲର ଢିଅ
ଘୁସିରହିଛୁ ଧରି ମଣିଷ ଦିହ
ଯେ ମଥା ନମାରେ ଅବ୍‌ଶୋଷ ? ।

( ୨୪ )

ଦେଖ ଗୋଧୂଳି ସମୟ, କେଡ଼େ ସୁଖମୟ
ପ୍ରକୃତି ସୁନ୍ଦରୀ ହସୁଛି—
ଦେଖ ଦାଣ୍ଡେ ଠାବେ ଠାବେ, ହମ୍ବା ହମ୍ବା ରବେ
ଧେନୁ ବତ୍ସଚରି ଫେରୁଛି ।
ପଶ୍ଚିମ ଗଗନ-ଲୋହିତ କିରଣ, ପର୍ବତ କନ୍ଦରେ ଲୁଚୁଛି ।
ତାର ଝହ ଝହ ଆଭା, ଜନମନ ଲୋଭା, ଥର ଥର ଥରି ଉଠୁଛି ।
କଳା ମେଘ କୋଳେ ଅନ୍ଧାରୁଆ ପଲେ
ଧାଡ଼ି ବାନ୍ଧି ଉଡ଼ି ଯାଉଛି ।
ନବକାଳିକା ଗଳେଦ୍ଧ ମୁକ୍ତା ମାଳିକା
ଦୋହୋଲି ଦୋହୋଲି ଖେଳୁଛି ।

( ୧୫ )

ଅଣ ବାପୁଆ ବୋଲି ଦେଲେ ଗାଳି
ମୋର କି ବାପ ନାହିଁ
ଆହା ବୋଲିବାକୁ ମୋର କେହି ନାହିଁ ।
ଅଭାଗିନୀ ଜନନୀ, ସେପୁଣି କଳଙ୍କିନୀ
ଶୁଣି ଶ୍ରୁତି ବଧୀର ହେଲା ନାହିଁ ।
ଜନନୀ ଅପବାଦ, ବିନ୍ଧୁଛି ମୋର ହୃଦ
ଜନକ ପାଦତଳେ ସିଝି କହି ।

( ୧୬ )

ଭକତ ମାନ ଧାରଣ କାରଣ ହେ ନାରାୟଣ
ଜଗତ ଜନ ରଞ୍ଜନ ପରମ ପ୍ରେମ ନିକେତନ ।
ମଧୁର ସୁର ସୁନ୍ଦର ନିଖିଳ ବିଶ୍ୱ ବନ୍ଦନ
ଆନନ୍ଦ କନ୍ଦ ସୁଗନ୍ଧ ଦେନ ଭକତି ଚନ୍ଦନ ॥
କଞ୍ଜ ଆନନ୍ଦ କୁଞ୍ଜ କୁସୁମ ମଞ୍ଜୁଲ ମନରଞ୍ଜନ
ସୁଖ ଦୁଃଖ ପୀରତି ଲାଳସା ପାଦପଦ୍ମ ବିମଣ୍ଡନ ॥

( ୧୭ )

କହ କହ ଜନନି; ତାର କେମନ୍ତ ରୂପ, ତାର କେମନ୍ତ ମୁଖ
ତାର କେମନ୍ତ ଭାବ-ତାର କେମନ୍ତ ଗୁଣ-କେତେ ଲାବଣ୍ୟ
ଠାଣି ।

ଗଢିବ ଗୁହାରି କଲେ ଶୁଣେ ନ ନାହିଁ
କାନ୍ଦିଲେ ବିକଳେ ପ୍ରାଣ କାନ୍ଦେ କି ନାହିଁ
କେଉଁଣ ଠାଇଁ, କହ ମିଳିବେ ସେହି, ମୋର ବ୍ରହ୍ମାଣ୍ଡ ସାଇଁ
ଯହିଁ ଉଚ୍ଚ ନୀଚ ଭେଦାଭେଦ ବିଗ୍ରହ ନାହିଁ
ଧନି ନିର୍ଦ୍ଧନ ଗୁଣୀ ନିର୍ଗୁଣ ସମାନ ପୁଣି ।
ଗହନ ବନ ପ୍ରାନ୍ତର ଗିରି ସାଗର
ଯହିଁ ଥିବେ ନିଶ୍ଚୟ କରିବି ବାହାର,
ପ୍ରାଣକୁ ମୋର, ହାଣେ ବିନ୍ଧୁଛି ଶର, ସେହି ବିମାତା ଗିର
ବିନା ପ୍ରତିକାରେ ମୋର ନାହିଁ ଆହାର
ମନ୍ତ୍ରର ସାଧନ ଅବା ଯିବ ପରାଣୀ ॥

---

( ୧୮ )

ପର ଲାଗି ଖୋଲିଲେ ଗୋଦ ପରମାଦ ପଡ଼େ ଆପଣା ଦେହେ ।
ପର ଶିରି ଦେଖି କାତର ହୋଇ ନ ନିଜଶିରି ନ ରହେ ।
ମହତ ଉଦାରଜନ, ଜଗତ ଜନ ଜୀବନ
ଭେଦାଭେଦ ନ ଦେଖେ ମନ-ସମାନ ଭାବେ ପୀରତି ବହେ ।
ଧନ ମାନ ବିଭବ ଲୋଭେ-ବିବେକର ବାଯିବରଜେ ।
ଧନ ଆଶା ପୂରଇ ନାହିଁ ମରଇ ଦୂଣି କୁଳକ୍ଷା ମୋହେ ।

---

( ୧୯ )

ସୁନା ପଞ୍ଜୁରୀ ଭାଙ୍ଗି ଗଲା ଚଳାଇ କେତେ ଅଛୁ ଲୋ ଶୋଇ
ସେତ ଆଉ ଫେରିବ ନାହିଁ ।

କି ସୁନ୍ଦର ଶୟନ ମାନସ ମୋହନ ଅଳସ ସ୍ୱପନେ ମଜନାହିଁ
ନୟନେ ପିୟୂଷ ଢାଳୁଅଛୁ ସିନା ଅନ୍ତରେ ଗରଳ ପାରିନାହିଁ
ମାଡିଥିଲୁ ସୁଖ ସରାଗେ
ତୋଠାରୁ ସୁଖୀ ନାହିଁ ଲୋ ଭବେ
ତୋର ଗରବ ଶଙ୍ଖାଳି ଉଭାଇଲା ଏବେ କାନ୍ଦି କାନ୍ଦି ଦିନ
ସରିବ ନାହିଁ ।

---

( ୩୦ )

ଲାଜମାନ ଭୟ ସରମ ତୁମ୍ଭଲାଗି ମୁଁ ଛାଡ଼ି ଅଛିହେ ।
ବଣେ ବଣେ ବନାଙ୍ଗନୀ ଉଦାସିନୀ ଭିକାରୁଣୀ ପରା
ବୁଲୁଛିହେ ।
ପିରତି ପିୟୂଷ କାଞ୍ଚନ ଥାଳ
ଜଗତ ମନ୍ତ୍ରନ ମୁକୁତା ମାଳ
ତୁମ୍ଭଲାଗି ଦିବାନିଶି ଭାଳ ଭାଳ ( ତୁମ୍ଭ ) ଭାବନାରେ ଗୋଳ
ଯାଉଛି ହେ ।
ତୁମ୍ଭେ ଭାନୁ ମୁହିଁ ପଙ୍କଜ କଳିକା
ତୁମ୍ଭେ ଚନ୍ଦ୍ର ମୁହିଁ କୁମୁଦ ଲତିକା
ତୁମ୍ଭେ ରାଜା ମୁହିଁ ସେବକ ଦୁହିତା ବୃଥା ଆଶା ମନେ
ପୋଷୁଛି ହେ ।

( ୩୧ )

କାହିଁ ଅଛ, ନବନୀରଦ ବରଣ ଘନଶ୍ୟାମ,
କମଳ ନୟନ ଅଭିରାମ, ଜଙ୍କରେ କରୁଣା ଊଣା ନ କର ।
ତୁମ୍ଭ ଲାଗି ଭାବି ଭାବି ବୈରାଗୀ
ସଂସାର ସଭାଗ ପରିତ୍ୟାଗୀ
ଜନନୀଙ୍କ କରିଲି ହତଭାଗୀ
ମୋର ସ୍ନେହ ପସରା, ଯେହ୍ନେ ମାଣିକ୍ୟହରା,
ଛାର ଜଗତ ସାରା, ତୁଚ୍ଛ ଅନ୍ଧାର କାରା
ବ୍ରହ୍ମାଣ୍ଡଠାକୁର, ଅନ୍ତର ଅଧୀର କର କର ଶୋକ ତାପ
ବେଦନା ଦୂର ।

---

( ୩୨ )

ଛିଃ ଛିଃ ଛିଃ ଦାସୀ ତୁମ୍ଭ ଚରଣ ବିନା
ନାହିଁ ମୋ ଆନ ଭାବନା ତୁମ୍ଭେ ପ୍ରେମ ସୁମନା ।
ତୁମ୍ଭେ ମୋ ଗଳାର ମାଳ
ମୁକୁତା ହୀରା ପିତୁଳ
ପରମ ପ୍ରେମ ଶିଖିଲି ମୁକତି ବାନା
ଚକୋରୀ ଚକୋର ତୁମ୍ଭେ କୁମୁଦ ଚନ୍ଦ୍ରମା
କୁଆଁରୀ ଗୃହ ଉଦିଆ ନିଶା ସୁଷମା ।

( ୩୩ )

ପରଶମଣି ପରଶେ କାଞ୍ଚନ ଆଭା ବିକାଶେ
କେତେ ନିମ୍ବ ଚନ୍ଦନ ପାଲଟେ ମଳୟ ପ୍ରକାଶେ ।
କୁସୁମ ପରଶେ ପଟ ଚୁମ୍ବଇ ଦେବତା ପାଦ
ସାଧୁସଙ୍ଗେ ଅସାଧୁ ସାଧୁତା ଲଭଇ ନିମିଷେ ।

---

( ୩୪ )

ଝର ଝର ଝରି ପଡ଼ୁ ପାତକୀ ନୟନୁ ବାରି
ତର ତର ଅନ୍ତରରେ ଅନୁତାପ ଦେଉ ଧାରି ।
ଗୋଟି ଗୋଟି ଫୁଟି ଉଠୁ ଅତୀତ କଥା
କୋଟିଗୁଣେ ବଢ଼ିଯାଉ ମରମ ବ୍ୟଥା ;
କ୍ଷଣେ କ୍ଷଣେ ମନେ ମନେ ଶୋକ ତାପ ଅଶ୍ରୁମାନେ—
ଅନ୍ତାନଳ ଜଳ ଜଳ ହୃଦମଳି ଦେଉ ମାରି ।

---

( ୩୫ )

ନବରସେ ରସିକା ଏକା ସହି ।
ରୂପଭୂଷା ଉପମା ନାହିଁ କାହିଁ
ଭୁବନ ମନ ନିଏ ମୋହି ।
ନବୀନା କିଶୋରି ତୋସଙ୍ଗେ କେ ସରି
ବାସ ଫୁଟି ପ୍ରକାଶ କୁମ୍ଭ ଦୁଇ ।
କେଉଁ ଯୁବା ନାଗର, ହେବ ଶର ଚକୋର
ଅଙ୍କ ମଣ୍ଡିବୁ କାର ନିଏ ସେହି ।।

( ୩୬ )

ଆସ ଆସ ନିବାସ ହୃଦୟେଶ କାତରେ ଖୋଜେ ଦାସ ହେ
ପୀତବାସ ଅଧୀର ମାନସ ସାର ପାଖକୁ ଆସ ହେ ।
କମଳ ନୟନ କୁସୁମ ସୁଷମ କରିଛି ଚୟନ ହେ
ଗୋଟି ଗୋଟି ତୋଳି ଗୁନ୍ଥିଛି ଏ ମାଳି ବୋଳିଛି ଚନ୍ଦନ ହେ
ଦେବିବୋଲି ତୁମ୍ଭ ପଙ୍କଜ ଚରଣେ ଧରିଛି ଯତନେ,
ପରାଣ ବାନ୍ଧବ ନାହିଁକି ପରାଗ ରହିଛି ଗୋପନରେ
ନାଗର ବର ସୁନ୍ଦର
କୋଟୀରଚ୍ଛିପଟି ନିନ୍ଦିତ ରୂପକୋଟି ଶଶଧର ସ୍ୱରୂପ
ଆସ ଆସ ବିରସ ମାନସ ସରସ କର ହାସରେ ।



( ୩୭ )

କାହିଁ ଅଛ ହରି, କାନନ ବିହାରି
ଦାସୀ ମନ ଚୋରି କରି ବଂଶିଧାରୀ
ଲୁକୁଛ କାଢରେ, କାନନ କାନ୍ତାରେ
ଶୁଣୁନାହିଁ ଅରେ ମାଧବ ମୁରାରୀ ।
କୃପାନିଧି ହୋଇ କୃପଣ ହୋଇଲେ
କା'ଆଗେ କହିବି ହରି କରମ ପଡ଼ିଲେ
କାନ୍ଦୁଛି ବିକଳେ, ତୁମ୍ଭେ ନ ତାରିଲେ
କେ ଅଛି କା'ଠାଇଁ କରିବି ଗୁହାରି ।

( ୩୮ )

ଝର ଝର ଝର ଝର ତଟିନୀ ଝରେ ଗିରି କନ୍ଦରେ ମଞ୍ଜୁସମୀରେ
ଗମ୍ଭୀର ଗରଜନେ ସିନ୍ଧୁ ନାଦକରେ ଉଚ୍ଛୁଳଇ ପ୍ରେମ
ହିଲ୍ଲୋଳେ
ହରେ ମୁରାରେ କରୁଣାଧାର ସଂସାରେ ।
ଶୁକପିକ କାକ କେକା ରବ ମୁଖରିତ
ଚମ୍ପିତ ଅଟବି ବିହାରେ
ଶ୍ୟାମଳ ଶସ୍ୟଶାଳା କମଳାଳୟ ମଳୟ ମରୁତ
ମନହରେ ॥

---

( ୩୯ )

ଏଭଳ କାମକରି ଯିବୁମରି ହେ ଦୁଖିଆ କାନ୍ଦୁଥିବ
ଛୋଷୁଣୀ ସୁମରି ସୁମରି ଝୁରି ଝୁରି ଭାଳୁଥିବ ।
ଜନମିଲୁ ଯେବେ ଜନମନ ହରି
କାନ୍ଦିଲୁ ତୁ ଦୁଖିଆ ହସିଲା
ହସିହସି ଯିବୁ ଜଗତ କନ୍ଦାଇବୁ କେହି ନ ବୋଲବେ
ଭଲହେଲା ।
ନୟନୁ ନୟନୁ ଲୋତକ ଝର ଝର ଝରୁଥିବ ।
ଦିନ ଦୁଇଥର ନାହିଁ ଲାଗିଛିରେ କେହିତ ନୁହଇ କାହାର
କେତୋର ମାତା, କେତୋର ପିତା ପତ୍ନି ପୁତ୍ର ପରିବାର
କା ଲାଗି ଅନୁରାଗି ଭାବି ଭାବି ହେଲୁ ତଣ୍ଟି ତ୍ୟାଗୀବ ।

କେତେ କାଳ ପାଇଁ ସୁଆଙ୍ଗ ସାଜିଛୁରେ
କେତେକାଳ ରହିବ ଏ ଛଇ
କା ଲାଗି ମିଛେ ଗୋଡ଼ାଉଛୁ ପଛେ, କାହାଲାଗି
ହେଉଛୁ ବହି
ପୋଷାକ ଓହ୍ଲାରି ଫିଙ୍ଗିଲେ
କେହି କାହାର ନୋହିବ ।

( ୪୦ )

ମଧୁର ଏଦିନ ମଧୁର ମିଳନ
ହୁଲାହୁଳି ଦିଅଲୋ ।
ଯୁବକ ଯୁବତୀ ଯୁଗଲ ମିଳନ
ଯୁଗଲ ବିବାହଲୋ ।
ଧରା ମଣିଭୂଷା ତରୁଣୀ ଯୋଷା
ଲାବଣ୍ୟ ବରଣ କାଞ୍ଚନ ବେଶା
ସାରସ ନୟନା ସରସ ପୋରସେ
ଲାକ୍ଷାରସ ଦେହଲୋ ।
ପାଇଛ ନାଗରୀ ନାଗର ସୁନ୍ଦର
କୋଟୀ ରତି ପତି ନିନ୍ଦି ସୁଧା କର
ସାଗର ସମୀର ଭୂଧର ଶିଖରେ ଢଳୁଛି ଶବଦେ ଲୋ ।

୯/୫୨।·୪୫। / ~~[illegible]~~
ସମାପ୍ତ ।
Y857

# ବିଜ୍ଞାପନ ।

ନିମ୍ନ ଲିଖିତ ପୁସ୍ତକମାନ

କଲିକତା ଉତ୍କଳପ୍ରେସ, ୮, ସେଣ୍ଟ ଜେମସ ସ୍କୋୟାର ବହୁବଜାର
ଓ ବିରଜା ପ୍ରେସ, ଯାଜପୁର, କଟକ
କିମ୍ବା ବିରଜା ସଙ୍ଗୀତ ସମାଜର ଶିକ୍ଷକ, ଯାଜପୁର, କଟକ

ଏହି ଠିକଣାରେ ମିଳିବ ।

| | |
|---|---|
| ଧ୍ରୁବଚରିତ ଗୀତାବଳୀ | ଟ ୦/୬ |
| ହରିଅନ୍ୱେଷଣ | ଯନ୍ତ୍ରସ୍ଥ |
| ଗଯାସୁର ବଧ | ,, |
| ସୀତା ବନବାସ | ,, |
| ଉଣ୍ଡ୍ରୀଷଙ୍କ | ,, |


PRINTED BY M. L. MAHARANA,
UTKAL PRESS. 8. ST. JAMES SQR. CALCUTTA.
1921.




(2179)